### ନିଖିଳ-ଉତ୍କଳ-ବୈଦ୍ୟ ସମ୍ମିଳନୀ

# ସଭାପତିଙ୍କର ଅଭିଭାଷଣ

### ଅଷ୍ଟମ ଅଧିବେଶନ (ବାଲେଶ୍ୱର)



**ସଭାପତି**

ପାରଳାଖେମଣ୍ଡି ମହାରାଜ ସଂସ୍କୃତ କଲେଜର ପ୍ରଧାନାଧ୍ୟାପକ

ଅନ୍ଧ୍ର ବିଶ୍ୱବିଦ୍ୟାଳୟର ସିନେଟ ସଭ୍ୟ

## କବିରାଜ ଶ୍ରୀ ଅନନ୍ତ ତ୍ରିପାଠୀ ଶର୍ମ୍ମା, *P. O. L.*

ଆୟୁର୍ବେଦାଚାର୍ଯ୍ୟ, ସାହିତ୍ୟ ଶିରୋମଣି, ମୀମାଂସା ବିଦ୍ୟାପ୍ରବୀଣ

ପାରଳାଖେମଣ୍ଡି ତା ୧୪-୬-୩୬

# ଧନ୍ୱନ୍ତରିର୍ଜୟତି

ପ୍ରିୟ ସହୃଦୟଗଣ,

ଆପଣମାନଙ୍କର ଆନ୍ତରିକ ଅନୁରୋଧର ପ୍ରତ୍ୟାଖ୍ୟାନ ମୋ’ ପକ୍ଷରେ ସମ୍ଭବପର ହୋଇ ନାହିଁ । ମୁଁ ଆଜ ସେ ଅନୁରୋଧ ବଳରେ ଏହି ଆସନ ଗ୍ରହଣ କରୁଅଛି । ଆପଣମାନଙ୍କର ଏହି ଆନ୍ତରିକତାକୁ ମୁଁ ଧନ୍ୟବାଦ ଦେଉଅଛି । “ସମ୍ଭାବନା ହ୍ୟଧି-କୃତସ୍ୟ ତନୋତି ତେଜଃ” (ଅଧିକାର ଅଧିକାରୀର ସତ୍ତ୍ୱ ବଢ଼ାଇଥାଏ) ଆପଣମାନଙ୍କର ଏହି ଅଧିକାର ଦାନହିଁ ମୋର ସମ୍ବଳ । ଚିକିତ୍ସା କ୍ଷେତ୍ରରେ ମୋର ଯୋଗ୍ୟତା ବା ସ୍ଥାନ କାହାରି ଅବିଦିତ ନାହିଁ । ଜଣେ ପାଠୁଆ ଅଧ୍ୟାପକ ଅପେକ୍ଷା ଏକ ଜଣ ପ୍ରବୀଣ ଆୟୁର୍ବେଦ ଚିକିତ୍ସକ ଏ କ୍ଷେତ୍ରରେ ବିଶେଷ ଉପାଦେୟ ବୋଲି ମୋର ବିଶ୍ୱାସ ।

ଆମ୍ଭେମାନେ ପବିତ୍ର ଉତ୍କଳର ଅଧିବାସୀ । ଉତ୍କଳ ଶବ୍ଦ ଉତ୍ତର କଳିଙ୍ଗ ବା ଉତ୍କଳିଙ୍ଗ ଶବ୍ଦର ପରିଣାମ ବୋଲି ଐତିହାସିକମାନଙ୍କର ଅଭିମତ । ଉତ୍କଳ ଓ କଳିଙ୍ଗର ଘନିଷ୍ଠ ସମ୍ବନ୍ଧ ସବୁବେଳେ ଥିଲା ଏବଂ ରହିଅଛି । ବର୍ତ୍ତମାନ ଆମ୍ଭମାନଙ୍କର ଏହି ପ୍ରଦେଶ ମଧ୍ୟ ପ୍ରାଚୀନ ଉତ୍କଳ ଓ କଳିଙ୍ଗର କେତେକ ଭାଗ ନେଇ ଗଠିତ । ଆମ୍ଭମାନଙ୍କର ଏହି ପବିତ୍ର ଜନ୍ମଭୂମିରେ ଆୟୁର୍ବେଦର ସମୁଜ୍ଜ୍ୱଳମଣି ଚରକ-ବିଶ୍ୱ-ନାଥ-ମାଧବ ପ୍ରଭୃତି ମେଧାବୀ ଆଚାର୍ଯ୍ୟଗଣ ଜନ୍ମଗ୍ରହଣ କରିଥିଲେ । ସେମାନଙ୍କର ଜ୍ଞାନାଲୋକ ସମସ୍ତ ଭାରତ କାହିଁକି ସମଗ୍ର ଭୂଖଣ୍ଡକୁ ଉଦ୍ଭାସିତ କରିଅଛି । ଆମ୍ଭେମାନେ ସେମାନଙ୍କର ବଂଶଧର ବୋଲି ଗର୍ବ କରିପାରୁଁ । ଆଜିର ଏହି ସମ୍ମିଳନୀ ସେହି ବଂଶଧରମାନଙ୍କର ସମିତି । ସେହି ଆଚାର୍ଯ୍ୟମାନଙ୍କର ପ୍ରତିଭା ଆଭା ଓ କୃତିତ୍ୱ ଆମ୍ଭମାନଙ୍କର ଆଦର୍ଶ ହେବା ଉଚିତ ।

ଆୟୁର୍ବେଦର ଅର୍ଥ ଆୟୁର୍ବିଜ୍ଞାନ । କେତେକ ପାଶ୍ଚାତ୍ୟ ଚତୁର୍ଦ୍ଦଶ ବିଦ୍ୟାରେ ଆୟୁର୍ବେଦର ସ୍ଥାନ ନାହିଁ ବୋଲି ଆୟୁର୍ବେଦକୁ ନିମ୍ନସ୍ତରରେ ସ୍ଥାନ ଦିଅନ୍ତି । ସେମାନଙ୍କର ଭ୍ରାନ୍ତ ଧାରଣା ଭିତ୍ତିହୀନ । ଆୟୁର୍ବେଦ ସ୍ୱତନ୍ତ୍ର ବିଦ୍ୟା ରୂପେ ପରିଗଣିତ ହୋଇନାହିଁ, କାରଣ, ଆୟୁର୍ବେଦ ବେଦର ଏକ ଭାଗ । ଅଥର୍ବବେଦର ବିଶେଷ ଭାଗରେ ଆୟୁର୍ବେଦର ଉପାଦାନ ନିହିତ ଅଛି । ମହର୍ଷି ସୁଶ୍ରୁତ କହିଅଛନ୍ତି— "ଇହ ଖଲ୍ୱାୟୁର୍ବେଦୋ ନାମ ଯଦୁପାଙ୍ଗମଥର୍ବବେଦସ୍ୟ, ଅନୁତ୍ପାଦ୍ୟୈବ ପ୍ରଜାଃ ଶ୍ଳୋକଶତସହସ୍ରମଧ୍ୟାୟସହସ୍ରଂଚ କୃତବାନ୍ ସ୍ୱୟମ୍ଭୂଃ" (ଆୟୁର୍ବେଦ ଅଥର୍ବବେଦର ଉପାଙ୍ଗ, ବ୍ରହ୍ମା ପ୍ରଜୋତ୍ପତ୍ତିପୂର୍ବରୁ ସହସ୍ର ଅଧ୍ୟାୟରେ ଦଶ ସହସ୍ର ଶ୍ଳୋକରେ ଆୟୁର୍ବେଦ ପ୍ରକାଶ କରିଥିଲେ) । ବୈଦିକଯୁଗର ଅନେକ ମହର୍ଷି ଆୟୁର୍ବେଦରେ ବ୍ୟୁତ୍ପତ୍ତି ଲାଭ କରିଥିଲେ । ଏହି ଆୟୁର୍ବେଦ ପ୍ରକ୍ରିୟାର ଅନୁଶୀଳନରେ କେବଳ ସେମାନେ ଦୀର୍ଘଜୀବୀ ହୋଇପାରୁଥିଲେ ବୋଲି କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ । ପୁନର୍ବସୁ, ଅଗ୍ନିବେଶ-ଭେଲ-ଜତୁକର୍ଣ୍ଣ-ପରାଶର--ହାରୀତ-କ୍ଷାରପାଣି-ଏହି ଛଅଜଣ ଶିଷ୍ୟଙ୍କୁ ଆୟୁର୍ବେଦ ଉପଦେଶ ଦେଇଥିଲେ । ସେମାନେ ପ୍ରତ୍ୟେକରେ ଏକ ଏକ ତନ୍ତ୍ର ପ୍ରଣୟନ କରିଥିଲେ । (ଅଥ ଭେଲାଦୟଶ୍ଚକ୍ରୁଃ ସ୍ୱଂ ସ୍ୱଂ ତନ୍ତ୍ରଂ ପୃଥକ୍ ପୃଥକ୍ ଚରକ ସଂହିତା) ଆଜିକାଲି ଆମ୍ଭେମାନେ ସେ ସମସ୍ତ ତନ୍ତ୍ର ଦେଖିପାରୁ ନାହିଁ । ଯେଉଁ କେତେକ ମିଳୁଅଛି, ସେ ସମସ୍ତରେ ସେହି ସେହି ତନ୍ତ୍ରର ଉଲ୍ଲେଖ ଅଛି । ଅତଏବ ସେମାନେ ଗ୍ରନ୍ଥ ରଚନା କରି ନଥିଲେ ବୋଲି କେହି କହିପାରିବେ ନାହିଁ । ଆଜି କାଲିକାର ଚରକ ଅଗ୍ନିବେଶକୃତ ଗ୍ରନ୍ଥର ସଂସ୍କରଣ ମାତ୍ର । ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଅଛି—ବୈଦିକ ଯୁଗରେ ଆୟୁର୍ବେଦର କେବଳ ଅଙ୍କୁରୋଦ୍ଗମ ହୋଇ ନଥିଲା, ତାହାର ଚର୍ଚ୍ଚା ମଧ୍ୟ ସୁନ୍ଦର ଭାବେ ହେଉଥିଲା ।

ପୌରାଣିକ ଯୁଗରେ ମଧ୍ୟ ଆୟୁର୍ବେଦର ପ୍ରଚାର ବିଶେଷ ଭାବେ ହୋଇଥିଲା । ମହର୍ଷି ଚ୍ୟବନ ଆୟୁର୍ବେଦ ପ୍ରଭାବରେ ନବଯୌବନ ଲାଭ କରିଥିଲେ । ଯଜ୍ଞର ଛିନ୍ନ ମସ୍ତକ ଅଶ୍ୱିନୀକୁମାରଙ୍କ ଦ୍ୱାରା ସଂଯୋଜିତ ହୋଇଥିଲା । ସର୍ପଦଂଷ୍ଟ୍ର ବ୍ୟକ୍ତିମାନେ ପୁନର୍ବାର ଉଜ୍ଜୀବିତ ହୋଇ ପାରୁଥିଲେ । ସମରାହତ ବୀରମାନେ ଏହି ପ୍ରକ୍ରିୟାରେ ଚିକିତ୍ସିତ ହେଉଥିଲେ । ଏହିପରି ଶତ ଶତ ଦୃଷ୍ଟାନ୍ତ ପୁରାଣଯୁଗରେ ଆୟୁର୍ବେଦର ବହୁଳ ପ୍ରଚାର ପ୍ରମାଣିତ କରୁଅଛି । ମଧ୍ୟ-ଯୁଗରେ ଆୟୁର୍ବେଦ ଚରମ ଉତ୍କର୍ଷ ଲାଭ କରିଥିଲା । ବିକ୍ରମାଦିତ୍ୟ (ଦ୍ୱିତୀୟ ଚନ୍ଦ୍ରଗୁପ୍ତ-ପଞ୍ଚମ ଶତାବ୍ଦୀୟ) ଙ୍କ ସଭାରେ ଧନ୍ୱନ୍ତରି ବିଶିଷ୍ଟ ସ୍ଥାନ ଅଧିକାର କରିଥିଲେ । ଚୀନ ପରିବ୍ରାଜକଙ୍କର ବିବରଣୀରୁ ତାହାଙ୍କ ଆୟୁର୍ବେଦ ଚିକିତ୍ସାର ବିଶେଷ ପରିଚୟ ମିଳେ । ଅସ୍ତ୍ରଚିକିତ୍ସା ସେ ସମୟରେ ଉତ୍ତମରୂପେ କରା ଯାଉଥିଲା । ସେ ସମୟରେ ଆୟୁର୍ବେଦ ଅଷ୍ଟଭାଗରେ ବିଭକ୍ତ ହୋଇ ପୂର୍ଣ୍ଣାଙ୍ଗ ହୋଇଥିଲା । ଚରକ-ସୁଶ୍ରୁତ-ପ୍ରଭୃତି ଗ୍ରନ୍ଥ ପୁଙ୍ଖାନୁପୁଙ୍ଖରୂପେ ଆଲୋଚିତ ହେଉଥିଲା । ନାଳନ୍ଦା ବିଶ୍ୱବିଦ୍ୟାଳୟରେ ଆୟୁର୍ବେଦ-ଅଧ୍ୟାପନାର ସକଳ ପ୍ରକାର ଆୟୋଜନ କରା ଯାଇଥିଲା । ପ୍ରତ୍ନତତ୍ତ୍ୱବିଦ୍‌ମାନେ ତକ୍ଷଶିଳାର ପ୍ରତ୍ନତତ୍ତ୍ୱ ଉଦ୍ଧାର କରିବାକୁ ଯାଇ ଅନେକ ଅସ୍ତ୍ର ଶସ୍ତ୍ର ଆବିଷ୍କାର କରିଅଛନ୍ତି । ସେ ଗୁଡ଼ିକ ସେ ସମୟରେ ବ୍ୟବହୃତ ହେଉଥିଲା । ସେ ସମସ୍ତର ସ୍ୱରୂପ ଦେଖି ଆଧୁନିକ ବିଜ୍ଞାନ ଜଗତ ସ୍ତବ୍ଧ ହୋଇଅଛି । ଆଜିକାଲି ମଧ୍ୟ-ଯୁଗ ରଚିତ ଅନେକ ଆୟୁର୍ବେଦ ଗ୍ରନ୍ଥ ଦେଖିବାକୁ ମିଳେ । ବୈଦିକ ଯୁଗରୁ ମଧ୍ୟ-ଯୁଗର ଶେଷଭାଗ ପର୍ଯ୍ୟନ୍ତ ଆୟୁର୍ବେଦ କ୍ରମଶଃ ବିକାଶ ଓ ପରିପୁଷ୍ଟି ଲାଭ କରି ଆସୁଥିଲା । ପାଶ୍ଚାତ୍ୟ ଚିକିତ୍ସାର ପ୍ରଚାର ପୂର୍ବରୁ ଭାରତରେ ଆୟୁର୍ବେଦ ଚିକିତ୍ସାହିଁ ପ୍ରଚଳିତ ଥିଲା । ଲୋକେ ଏହି ଚିକିତ୍ସାରେ ଦୀର୍ଘ ଜୀବନ ଲାଭ କରୁଥିଲେ, ଦେଶରେ

ଅକାଲ ମୃତ୍ୟୁ ସ୍ଥାନ ପାଉନଥିଲା । ଆୟୁର୍ବେଦର ପ୍ରତ୍ୟେକ ଶାଖାର ଯଦି ବହୁଳ ପ୍ରଚାର ହୁଏ, ଅକାଳ ମୃତ୍ୟୁ କଦାପି ସ୍ଥାନ ପାଇବ ନାହିଁ ବୋଲି ମୋର ବିଶ୍ୱାସ ।

ହିନ୍ଦୁ ରାଜାମାନଙ୍କର ସ୍ୱାଧୀନତା ରବି ଅସ୍ତ ହେବା ସଙ୍ଗେ ସଙ୍ଗେ ଆୟୁର୍ବେଦ ଅନ୍ଧକାରାଚ୍ଛନ୍ନ ହୋଇଅଛି । ଆୟୁର୍ବେଦ ଚିକିତ୍ସକ-ଗଣ ରାଜା ମହାରାଜାମାନଙ୍କର ସହାନୁଭୂତି ହରାଇ ଅଛନ୍ତି । ରାଜା ମହାରାଜାମାନେ ବୈଦେଶିକ ଚକ୍ରଚକ୍ୟରେ ମୁଗ୍ଧ ହୋଇ ଏହି ସ୍ୱଦେଶୀ ବିଜ୍ଞାନକୁ ହତାଦର କରିଅଛନ୍ତି । ଧନିକମାନେ ରାଜାମାନ-ଙ୍କର ମାର୍ଗ ଅନୁସରଣ କରି ଅଛନ୍ତି । ବିଦେଶୀ କୂଟନୀତି ଏ କ୍ଷେତ୍ରରେ ବିଚିତ୍ର ଖେଳା ଖେଳିଅଛି । ଯେଉଁ ଆୟୁର୍ବେଦର ଉପା-ଦାନରେ ପାଶ୍ଚାତ୍ୟ ଚିକିତ୍ସାର ଅଭ୍ୟୁନ୍ନତି ସମ୍ଭବପର ହୋଇଅଛି ବୋଲି ପାଶ୍ଚାତ୍ୟ ମନୀଷୀବୃନ୍ଦ ସ୍ୱୀକାର କରନ୍ତି, ତାକୁ ପଙ୍ଗୁ କରିବାକୁ ସବୁ ପ୍ରକାର ଆୟୋଜନ କରାଯାଇଅଛି । ଫଳତଃ ଆୟୁର୍ବେଦ ଉଠିଇ ପାରୁନାହିଁ । ଅସ୍ତ୍ର ଚିକିତ୍ସା ଲୁପ୍ତ ହେବାକୁ ବସିଅଛି । ଆୟୁର୍ବେଦ ଗୋଟାଏ ବିଜ୍ଞାନ ନୁହେଁ ବୋଲି ମଧ୍ୟ ପାଶ୍ଚାତ୍ୟମାନେ ରଡ଼ି ଛାଡୁ ଅଛନ୍ତି । ଏହି ଅବନତି ସକାଶେ ଆମ୍ଭେମାନେ ମଧ୍ୟ ଆଂଶିକ ଭାବେ ଦାୟୀ । ଆମ୍ଭେମାନେ ନାନା ଭାବରେ ଜିଜ୍ଞେଷିତ ହୋଇ ଆମ୍ଭର ବିଜ୍ଞାନ ବିଭବ ଜଗତ ସମ୍ମୁଖରେ ଉପସ୍ଥାପିତ କରିପାରି ନାହୁଁ । କେବଳ ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଆମ୍ଭମାନଙ୍କର ଚକ୍ଷୁ ଉନ୍ମୀଳିତ ହୋଇଅଛି । ଆୟୁର୍ବେଦ ବିଜ୍ଞାନର ପୁନରୁଦ୍ଧାର କରିବାକୁ ଚେଷ୍ଟା କରାଯାଇ ଅଛି । ଏହି ଅଳ୍ପଦିନର ଅଦମ୍ୟ ଚେଷ୍ଟାରେ ଆଜି ଜଗତ ଆୟୁର୍ବେଦର ମହତ୍ତ୍ୱ ଓ ପ୍ରତିଷ୍ଠା ଜାଣିପାରୁଅଛି । ପାଶ୍ଚାତ୍ୟ ଜଗତ ଆୟୁର୍ବେଦର ପ୍ରାଚୀନ ବିଭବ ଦେଖି ଚମତ୍କୃତ ହେଉଅଛି । ଏମନ୍ତ ସନ୍ଧିସ୍ଥଳେ ଆମ୍ଭେମାନେ ଉଦାସୀନ

ହେଲେ ଚଳିବ ନାହିଁ । କଥା ଅଛି—'ଶୋଇଲା ପୁଅର ଭାଗ ନାହିଁ' । ଆମ୍ଭେମାନେ ସମବେତ ଭାବେ ଯତ୍ନ ଚେଷ୍ଟା କରିବା, ଅବଶ୍ୟ ଭଲ ଫଳ ହେବ । ଆମ୍ଭେମାନେ ବ୍ୟକ୍ତିଗତ ଈର୍ଷା ବା ଦ୍ୱେଷ ତ୍ୟାଗ କରି ଆମ୍ଭ ଦେଶରେ ପୂର୍ବ ଗୌରବ ବଢ଼ାଇବାକୁ ଅଣ୍ଟାଭିଡ଼ି ଛିଡା ହେବା ସର୍ବତୋଭାବେ ବାଞ୍ଛନୀୟ ।

ନାନା ଭାବରେ ନିଯ୍ୟାତିତ ହୋଇଥିଲେ ମଧ୍ୟ ଆୟୁର୍ବେଦ ଯେ ଆଜି ପର୍ଯ୍ୟନ୍ତ ବଞ୍ଚିରହିଛି—ଏହାହିଁ ଏହାର ମହତ୍ତ୍ୱ ଉଦ୍ଘୋଷିତ କରୁଅଛି । ସହରର ବାବୁମାନେ ଆୟୁର୍ବେଦର ହତାଦର କରୁଥିଲେ ମଧ୍ୟ ସମୟ ସମୟରେ ବାଧ୍ୟ ହୋଇ ଏହାର ମଧୁମୟ ଫଳର ଲୋଭ ସଂବରଣ କରିପାରୁ ନାହାନ୍ତି । ପଲ୍ଲୀରେ ଅଦ୍ୟାପି ପାଶ୍ଚାତ୍ୟ ଶିକ୍ଷାର ମୋହ ପ୍ରବେଶ କରିପାରି ନାହିଁ । ଭାରତର ୩୫ କୋଟି ଜନମାନଙ୍କ ମଧ୍ୟରୁ ପ୍ରାୟ ଅର୍ଦ୍ଧାଧିକ ଲୋକ ଆଜିକାଲି ଆୟୁର୍ବେଦ ଚିକିତ୍ସାରେ ଚିକିତ୍ସିତ ହେଉ ଅଛନ୍ତି । ଏହି ପଲ୍ଲୀଗୁଡ଼ିକ ଆମ୍ଭମାନଙ୍କର ଦୃଷ୍ଟିରେ ସର୍ବଦା ରହିବା ଉଚିତ । ପାଶ୍ଚାତ୍ୟ ଦେଶର ବଡ଼ ବଡ଼ ମନୀଷୀମାନେ ପ୍ରଥମରେ ପଲ୍ଲୀଜୀବନ ଆରମ୍ଭ କରି ଉଚ୍ଚତମ ସୋପାନ ଆରୋହଣ କରିଅଛନ୍ତି । ଆଜିକାଲି ସରକାର ତଥା ଜନ ସାଧାରଣଙ୍କର ମଧ୍ୟ ଦୃଷ୍ଟି ପଲ୍ଲୀ ଉପରେ ପଡ଼ିଅଛି । ପଲ୍ଲୀର ମ୍ୟାଲେରିଆ ପ୍ରପୀଡ଼ିତ ଅର୍ଦ୍ଧମୃତ ବ୍ୟକ୍ତିମାନଙ୍କ ସକାଶେ ଆମ୍ଭମାନଙ୍କର ବିଶେଷ କର୍ତ୍ତବ୍ୟ ଅଛି । ଆମ୍ଭେମାନେ ଯଦି ପଲ୍ଲୀ ଆଡ଼କୁ ଦୃଷ୍ଟି ଦେବା, ସେମାନଙ୍କର ଜୀବନ ଉଦ୍ଧାର କରିବା ସଙ୍ଗେ ସଙ୍ଗେ ଆମ୍ଭମାନଙ୍କର ଜୀବନ ମଧ୍ୟ ଚରିତାର୍ଥ କରିପାରିବା ।

ଯେ ଯାହା କହନ୍ତୁ, ଆୟୁର୍ବେଦ ଚିକିତ୍ସା ଯେ ଭାରତୀୟମାନଙ୍କର ଏକମାତ୍ର କାର୍ଯ୍ୟକାରୀ ଚିକିତ୍ସା, ଏଥିରେ ସନ୍ଦେହ ନାହିଁ । ଜଳ, ବାୟୁ, ଦେଶ, କାଳ ଏହିମାନଙ୍କୁ ନେଇ ମାନବର ପ୍ରକୃତି ଗଠିତ । ଏମାନ-

ଙ୍କର ବିକୃତିରେ କେବଳ ନାନା ପ୍ରକାର ରୋଗର ସୃଷ୍ଟି । ଏହି-ମାନଙ୍କୁ ମୌଳିକ ଉପାଦାନ ରୂପେ ଧରି ଚିକିତ୍ସା କରିବାକୁ ହୁଏ । ଭାରତର ବିଭିନ୍ନ ପ୍ରଦେଶର ଜଳବାୟୁ ନେଇ ବିଭିନ୍ନ ଚିକିତ୍ସା କରିବାକୁ ହେବ ବୋଲି ଶାସ୍ତ୍ରକାରମାନେ ସ୍ଥିର କରି ଅଛନ୍ତି । ଭାରତ ଉଷ୍ଣ ପ୍ରଧାନ ଦେଶ; ଭାରତୀୟ ଜଳରେ ବରଫର ସମ୍ପର୍କ ନାହିଁ; ଭାରତୀୟ ଋତୁ ନିୟମ ପାଶ୍ଚାତ୍ୟ ଋତୁ ନିୟମର ସମ୍ପୂର୍ଣ୍ଣ ବିପରୀତ; ଭାରତର ବାୟୁ ଭାରତୀୟ ପରିସ୍ଥିତି ନେଇ ନିଜର ପ୍ରଭାବ ବିସ୍ତାର କରେ । ଏହି ଦେଶ, ଏହି ବାୟୁ, ଏହି ଜଳ, ଏହି କାଳ—ଏମାନଙ୍କର ପ୍ରକୃତି ସାମ୍ୟ, ବୈଷମ୍ୟ ନେଇ ଆୟୁର୍ବେଦ ଚିକିତ୍ସାର ସୂତ୍ରପାତ । ସୁତରାଂ ଏହି ଚିକିତ୍ସା ଅବ୍ୟର୍ଥ ଓ ସଦ୍ୟଃ ଫଳପ୍ରଦ । ପାଶ୍ଚାତ୍ୟ ଚିକିତ୍ସା ସେହି ଦେଶର ଜଳ-ବାୟୁ, ସମୟର ପ୍ରକୃତି ନେଇ ଆତ୍ମଲାଭ କରିଅଛି । ପାଶ୍ଚାତ୍ୟ ଚିକିତ୍ସା ଜଗତର ସକଳ ବିଷୟରେ ସର୍ବାଙ୍ଗୀନ ଅଭିବୃଦ୍ଧି ଲାଭ କରିଅଛି, ଏହା ମୁଁ ଅସ୍ୱୀକାର କରୁନାହିଁ । ଅସ୍ତ୍ର ଚିକିତ୍ସାରେ ଆମ୍ଭେମାନେ ତାର ଢେର ପଛରେ ପଡ଼ିଅଛୁଁ—ଏହା ମଧ୍ୟ ଅସ୍ୱୀକାର କରୁନାହିଁ । କିନ୍ତୁ, ଦୃଢ଼ତାର ସହିତ କହୁଅଛି ଯେ, ଚିକିତ୍ସା ଦିଗରେ ଆୟୁର୍ବେଦ ଚିକିତ୍ସା ଭାରତୀୟଙ୍କ ପକ୍ଷରେ ଅପେକ୍ଷାକୃତ କାର୍ଯ୍ୟକାରୀ । କିନ୍ତୁ ହେବ କ'ଣ ? ଆମ୍ଭେମାନେ ତାହା ପ୍ରମାଣିତ କରିବାକୁ ଶକ୍ତି ସଞ୍ଚୟ କରିପାରୁ ନାହୁଁ । ଚରକ, ସୁଶ୍ରୁତ, ବାଗ୍‌ଭଟ୍ଟ ପ୍ରଭୃତି ଗ୍ରନ୍ଥମାନ ବିଶ୍ଳେଷଣ କରି ପଢ଼ିବାକୁ ଆଗ୍ରହ ପ୍ରକାଶ କରୁ ନାହୁଁ । ଯତ୍ସାମାନ୍ୟ ଜ୍ଞାନ ଉପାର୍ଜ୍ଜନ କରି ଜୀବନର ଗତି ଆରମ୍ଭ କରି ଦେଉଅଛୁଁ । ଆମ୍ଭର ଗୁରୁଦାୟିତ୍ୱ ପ୍ରତି ଭ୍ରୂକ୍ଷେପ କରୁନାହୁଁ । ଫଳରେ ଜୀବନ କ୍ଷେତ୍ରରେ କୃତାର୍ଥତା ଲାଭ କରିପାରୁ ନାହୁଁ; ଅନ୍ୟମାନଙ୍କର ଉପ-ହାସାସ୍ପଦ ହେଉଅଛୁଁ । ସେମାନଙ୍କର ଉପହାସ ଦୂର କରିବାକୁ ଓ ଆୟୁର୍ବେଦର ମହତ୍ତ୍ୱ ଜଗତ ସମ୍ମୁଖରେ ଉପସ୍ଥାପିତ କରିବାକୁ

ହେଲେ ପ୍ରଥମେ ଆମ୍ଭମାନଙ୍କୁ ଶକ୍ତ ଓ ବୁଦ୍ଧିପୃତ୍ତି ସଞ୍ଚୟ କରିବାକୁ ହେବ ।

ପାଶ୍ଚାତ୍ୟମାନେ ଆସ୍ପର୍ଦ୍ଧା କରନ୍ତି ଯେ ଆଜିକାଲି ଅନେକ ନୂତନ ରୋଗ ଦେଖା ଦେଲାଣି । ଆୟୁର୍ବେଦରେ ସେ ସମସ୍ତର ଉଲ୍ଲେଖ ନାହିଁ, ସେହି ସେହି ରୋଗ ସକାଶେ ଆୟୁର୍ବେଦ ପରମୁଖାପେକ୍ଷୀ ନ ହୋଇ ରହିପାରିବ ନାହିଁ । ଦୁଃଖର କଥା—ଯେଉଁମାନେ ଏହି ଭଳିଆ ମତ ବ୍ୟକ୍ତ କରନ୍ତି, ସେହିମାନେ ଆୟୁର୍ବେଦର ମୌଳିକ ତତ୍ତ୍ୱ ଜାଣନ୍ତି ନାହିଁ । ଶରୀର କ୍ଷିତି, ଜଳ, ତେଜ, ବାୟୁ, ଆକାଶ ଏହି ପଞ୍ଚଭୂତର ସମଷ୍ଟି । ଆମ୍ଭର ଆୟୁର୍ବେଦ ଏହି ପଞ୍ଚଭୂତକୁ ବିଶ୍ଲେଷଣ କରି ତିନୋଟି ଉପାଦାନ ଉଦ୍ଭାବନ କରିଅଛି । ଏହି ତିନୋଟି ହେଉଛି—ବାତ, ପିତ୍ତ ଓ କଫ । ଏହି ତିନୋଟିର ସାମ୍ୟାବସ୍ଥାକୁ ସ୍ୱାସ୍ଥ୍ୟ ଓ ବୈଷମ୍ୟକୁ ବିକୃତି ବା ରୋଗ କୁହାଯାଏ । (ଦୋଷାଃ ପୁନସ୍ତ୍ରୟୋ ବାତପିତ୍ତ ଶ୍ଲେଷ୍ମାଣଃ, ତେ ପ୍ରକୃତିଭୂତାଃ ଶରୀରୋପକାରକା ଭବନ୍ତି, ବିକୃତିମାପନ୍ନାଃ ଖଲ୍ୱ ନାନାବିଧୈର୍ବିକାରୈଃ ଶରୀର ମୁପତାପୟନ୍ତି, ଚରକ ସଂହିତା) ମହର୍ଷି ସୁଶ୍ରୁତ କହି ଅଛନ୍ତି— "ଯେପରି ପକ୍ଷୀ ସମସ୍ତ ଦିନ ଆକାଶରେ ଭ୍ରମଣ କଲେ ମଧ୍ୟ ନିଜର ପରିଧି (କକ୍ଷା) ଅତିକ୍ରମ କରିପାରେ ନାହିଁ, ସେହିପରି ଯେ କୌଣସି ରୋଗ ନାନା ପ୍ରକାର ଗତି କଲେ ମଧ୍ୟ ବାତ-ପିତ୍ତ-କଫ ରୂପ ପରିଧି ଅତିକ୍ରମ କରିପାରେ ନାହିଁ ।" ଆପଣମାନେ ବ୍ଲଡ୍‌ପ୍ରେସର୍ କହନ୍ତୁ, ପ୍ଲୁରେସି କହନ୍ତୁ, ପ୍ଲେଗ ବା ଝିନିଝିନିଆ, ଯାହା କହନ୍ତୁ, ସେ ସମସ୍ତ ରୋଗରେ ବାତ ,ପିତ୍ତ ଓ କଫର ବିକୃତି ଛଡ଼ା ଆଉ ଅତିରିକ୍ତ ଦୋଷ ଦେଖି ପାରିବେ ନାହିଁ । ଏହି ବାତ-ପିତ୍ତ-କଫର ବୈଷମ୍ୟ ବିଶ୍ଲେଷଣ କରିବା ସକାଶେ ଆମ୍ଭମାନଙ୍କର ନିଦାନ, ପୂର୍ବରୂପ, ରୂପ, ଉପଶୟ ଓ ସମ୍ପ୍ରାପ୍ତି ରୂପ ପାଞ୍ଚୋଟି ସାଧନ ଅଛି ।

ଦେଶ, କାଳ, ବୟସ, ଅବସ୍ଥା, ପ୍ରକୃତି ଇତ୍ୟାଦି ପୁଙ୍ଖାନୁପୁଙ୍ଖରୂପେ ପର୍ଯ୍ୟାଲୋଚନା କଲେ ସେହି ସେହି ନୂତନ ରୋଗର ମୌଳିକ ତତ୍ତ୍ୱ ଜାଣିବା ସହଜ ହୋଇ ପାରିବ । ସେ ସମସ୍ତର ଅପନୋଦନ ସକାଶେ ନାନା ପ୍ରକାର ଔଷଧ ଆପଣମାନେ ବ୍ୟବସ୍ଥା କରି ପାରିବେ । ପ୍ରତ୍ୟେକ ବସ୍ତୁର ରସ ବୀର୍ଯ୍ୟ-ବିପାକାଦି ସୁନ୍ଦର ରୂପେ ଆମ୍ଭର ଆର୍ଯ୍ୟ-ମାନେ ନିର୍ଦ୍ଦେଶ କରିଯାଇ ଅଛନ୍ତି । ଉପଯୁକ୍ତ ଔଷଧର ବ୍ୟବସ୍ଥା କଲେ ବାତ-ପିତ୍ତ-କଫ ସମ ଅବସ୍ଥାକୁ ପ୍ରାପ୍ତ ହେବ, ରୋଗ ଶାନ୍ତ ହୋଇଯିବ । ଏହି ବାତ-ପିତ୍ତ-କଫର ସାମ୍ୟାବସ୍ଥାର ଆନୟନରେ କେବଳ ଚିକିତ୍ସକର ଚିକିତ୍ସକତ୍ୱ ପ୍ରକାଶ ପାଏ । ଆମ୍ଭମାନଙ୍କର ମହନୀୟ ପୂର୍ବାର୍ଯ୍ୟଗଣ ଯାବତୀୟ ରୋଗର ଚିକିତ୍ସା ସକାଶେ ପ୍ରଶସ୍ତ ମାର୍ଗ ଦେଖାଇ ଦେଇ ଅଛନ୍ତି । ଆମ୍ଭେମାନେ ଶରୀର ଅନୁଶୀଳନ କରି ପାରିଲେ ଅବଶ୍ୟ ଚରିତାର୍ଥ ହୋଇପାରିବା ।

ସମୟର ପ୍ରଭାବରେ ଜଗତରେ ନାନାପ୍ରକାର ପରିବର୍ତ୍ତନ ଘଟୁଅଛି । ଜଗତ କ୍ରମେ କ୍ରମେ ଅଭ୍ୟୁନ୍ନତି ଆଡ଼କୁ ଗତି କରୁଅଛି ବୋଲି ବୈଜ୍ଞାନିକମାନେ କହନ୍ତି । ଜଗତର ରୁଚି ନେଇ ଆମ୍ଭ ଆୟୁ-ର୍ବେଦର ଗତି ମଧ୍ୟ ନିୟନ୍ତ୍ରିତ କରିବାକୁ ହେବ । ଆମ୍ଭେମାନେ ମାନଧାତା ଅମଳର ରୁଚି ନେଇ ଚିକିତ୍ସା କରିବାକୁ ଗଲେ କଦାପି ଜନମାନଙ୍କର ପ୍ରୀତିଭାଜନ ହୋଇ ପାରିବା ନାହିଁ । ଅନେକେ ଆୟୁର୍ବେଦର ଅନୁପାନ ବ୍ୟବସ୍ଥା ପସନ୍ଦ କରନ୍ତି ନାହିଁ । ଜଲ୍‌ଦି ଔଷଧ ସେବନ କରିବାକୁ ଭଲ ପାଆନ୍ତି । ଏଥିସକାଶେ ଆମ୍ଭମାନଙ୍କୁ ଆସବ-ଅରିଷ୍ଟାଦିର ବହୁଳ ପ୍ରଚାର କରିବାକୁ ହେବ । ଔଷଧମାନଙ୍କୁ ଅତିଶୀଘ୍ର କାର୍ଯ୍ୟକାରୀ କରିବାକୁ ହେବ । ସେ ସମସ୍ତ ଔଷଧର ସତ୍ତ୍ୱ ବାହାର କରି ବ୍ୟବହାର କରିବାକୁ ହେବ । ଅନ୍ୟ ଦେଶର କେତେକ

ବୈଦ୍ୟ ଆୟୁର୍ବେଦୀୟ କେତେକ ଫଳପ୍ରଦ ଔଷଧର ସତ୍ତ୍ୱ ବାହାର କରି ଇଞ୍ଜେକ୍‌ସନ ଦେଉ ଅଛନ୍ତି ଏବଂ ଆଶାତୀତ ଫଳ ଲାଭ ମଧ୍ୟ କରୁଅଛନ୍ତି । ଆଧୁନିକ ରୁଚି ଅନୁଯାୟୀ ପଥ୍ୟର ମଧ୍ୟ ବ୍ୟବସ୍ଥା କରିବା ଉଚିତ । ପାଶ୍ଚାତ୍ୟ ବ୍ୟବସାୟୀମାନେ ଔଷଧ ବିକ୍ରୟ ସଙ୍ଗେ ସଙ୍ଗେ ପଥ୍ୟ ମଧ୍ୟ ବିକ୍ରୟ କରି ଆମ୍ଭମାନଙ୍କୁ ଅକର୍ମଣ୍ୟ କରିବାକୁ ବସିଅଛନ୍ତି । ଅତଏବ ସେହି ଧରଣର ପଥ୍ୟସବୁ ଆବିଷ୍କାର କରି ବହୁଳ ପ୍ରଚାର ନ କଲେ ଆମ୍ଭର ଉନ୍ନତି ହୋଇ ପାରିବ ନାହିଁ । ଆପଣମାନେ ଯଦି ପାଶ୍ଚାତ୍ୟ ଆଦର୍ଶ ସମ୍ମୁଖରେ ରଖି ନିଜର ପ୍ରଭାବ-ପ୍ରତିପତ୍ତିର ସଦ୍‌ବ୍ୟବହାର କରନ୍ତି, ଅବଶ୍ୟ ଲୋକମାନଙ୍କର ଦୃଷ୍ଟି ଆକର୍ଷଣ କରିପାରିବେ । ସେମାନଙ୍କର ଆଦର୍ଶରେ ଯାଇ ଯେପରି ନିଜତ୍ୱ ଭୁଲି ନଯାନ୍ତି— ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେବା ଦରକାର । ବମନ, ବିରେଚନ, ନସ୍ୟକର୍ମ, ନିରୁହ ଓ ଅନୁବାସନର ପ୍ରକ୍ରିୟାର ଆଧୁନିକ ରୁଚି ଅନୁଯାୟୀ ସାମାନ୍ୟ ପରିବର୍ତ୍ତନ କରିବାକୁ ହେବ । ଏହି ସବୁ ବିଷୟରେ ପାଶ୍ଚାତ୍ୟ ମନୀଷୀମାନେ ଯେଉଁ ସବୁ ଯନ୍ତ୍ର ଇତ୍ୟାଦି ଆବିଷ୍କାର କରି ଅଛନ୍ତି, ସେ ସମସ୍ତ ଆୟୁର୍ବେଦର ଛାୟାରେ ଅନୁପ୍ରାଣିତ । ସେ ସମସ୍ତ ବ୍ୟବହାର କରାଯାଇ ପାରେ କିନ୍ତୁ ସେ ସମସ୍ତର ଆଶ୍ରୟରେ ଆୟୁର୍ବେଦୀୟ ଔଷଧ କେବଳ ବ୍ୟବହାର କରିବାକୁ ହେବ । ମଳମୂତ୍ରାଦିର ପରୀକ୍ଷାରେ ମଧ୍ୟ ଏହି ରୀତି ଆଶ୍ରୟଣୀୟ । ଯେଉଁ ପ୍ରକ୍ରିୟା ଅବଲମ୍ବନ କଲେ ଲୋକମାନଙ୍କର ରୁଚି ଆକର୍ଷଣ କରିପାରିବା ଅଥଚ ଆୟୁର୍ବେଦର ମୂଳ ଉତ୍ପାଟିତ ହେବ ନାହିଁ ବରଂ ଶକ୍ତ ହେବ, ସେହି ପ୍ରକ୍ରିୟାର ଆଶ୍ରୟ କଦାପି ଦୂଷଣୀୟ ନୁହେଁ । ଦାକ୍ଷିଣାତ୍ୟ କେତେକ ବୈଦ୍ୟ ଔଷଧର ଅନୁପାନ ରୂପେ ଆସବ ଓ ଅରିଷ୍ଟ ବ୍ୟବସ୍ଥା କରି ଲୋକମାନଙ୍କର ଦୃଷ୍ଟି ଆକର୍ଷଣ କରିପାରୁ ଅଛନ୍ତି । ଏହି ଆଦର୍ଶ ସକଳ କ୍ଷେତ୍ରରେ ଅନୁସରଣୀୟ ହେବା ଉଚିତ ।

ଦୁଃଖର କଥା, ଆଜକାଲ କେତେକ ବୈଦ୍ୟ ଆୟୁର୍ବେଦର ଦୋହି ଦେଇ କେବଳ ବିଦେଶୀ ଔଷଧ ବ୍ୟବହାର କରନ୍ତି । ସେହି- ମାନେ ଆୟୁର୍ବେଦର ମୂଳ ଉତ୍ପାଟନ କରୁଅଛନ୍ତି ବୋଲି ମୋର ଅଭିମତ । ଚରକ ମହର୍ଷିଙ୍କର ମତରେ ଜଗତରେ ଅନୌଷଧି ହୋଇ କିଛି ନାହିଁ, ସମସ୍ତ ବସ୍ତୁ ଔଷଧ ରୂପେ ବ୍ୟବହାର କରାଯାଇ ପାରେ । 'ସଏବ ଭିଷଜାଂ ଶ୍ରେଷ୍ଠୋ ରୋଗେଭ୍ୟୋ ଯଃ ପ୍ରମୋଚୟେତ୍' ଏହି ନିୟମ ଅନୁଯାୟୀ ସେମାନେ ମଧ୍ୟ ବୈଦ୍ୟରାଜ ପଦବାଚ୍ୟ ହୋଇ ପାରନ୍ତି, କିନ୍ତୁ ସେମାନଙ୍କର କାର୍ଯ୍ୟ କଦାପି ପ୍ରଶଂସନୀୟ ହୋଇପାରିବ ନାହିଁ । ସେମାନଙ୍କର ଆଚରଣ ଆୟୁର୍ବେଦର ଗତି ଶିଥିଳ କରି ଦେବ । ଆମ୍ଭେମାନେ ଯଦି ନିଜମାର୍ଗ ତ୍ୟାଗକରି ବିଦେଶୀୟ ପଦ୍ଧତି ଅନୁସରଣ କରିବା, ଆମ୍ଭର ଅଭ୍ୟୁନ୍ନତି କଦାପି ହୋଇପାରିବ ନାହିଁ । ଅତଏବ ସେହି ଧରଣର ଔଷଧରତ୍ନ ସବୁ ଆୟୁର୍ବେଦୋଦଧି ମନ୍ଥନ କରି ଉଦ୍ଧାର କରିବାକୁ ହେବ । ମନପ୍ରାଣ ଦେଇ ଅନୁଶୀଳନ କରିବାକୁ ହେବ । ନିଜମାର୍ଗରୁ ଭ୍ରଷ୍ଟ ହେବା କଦାପି ଅନୁମୋଦନୀୟ ନୁହେଁ ।

ଅନେକ ଆୟୁର୍ବେଦୀୟ ଭେଷଜ ଆଜକାଲି ଅପରିଚିତ ଅବ- ସ୍ଥାରେ ପଡ଼ିରହିଛି । ଆମ୍ଭମାନଙ୍କର ଆଖି ଆଗରେ ହୁଏତ, ସେ ସମସ୍ତ ଅଛି, ଅଥଚ ଆମ୍ଭେମାନେ ଜାଣିପାରୁ ନାହୁଁ । ଶୀଘ୍ର ସେ ସମସ୍ତର ଚର୍ଚ୍ଚା ହେବା ଦରକାର । ଏଥି ସକାଶେ ସମବେତ ଉଦ୍ୟମ ବିଶେଷ କାର୍ଯ୍ୟକାରୀ । "ନହି ସର୍ବଃ ସର୍ବଂ ଜାନାତି" । ପୂର୍ବରେ ଏ ସମସ୍ତର ଗବେଷଣା "ତଦ୍ବିଦ୍ୟସମ୍ଭାଷା" ନାମରେ ଅଭିହିତ ହେଉଥିଲା । ଆମ୍ଭମାନଙ୍କର ସମ୍ମିଳନୀର କାର୍ଯ୍ୟକ୍ରମରେ "ତଦ୍ବିଦ୍ୟସମ୍ଭାଷା" ସ୍ଥାନ ପାଇବା ଉଚିତ । ମାନନୀୟ ପଣ୍ଡିତ ଅଭିମାନ ମିଶ୍ରଙ୍କର ଅକ୍ଳାନ୍ତ ଅଧ୍ୟବସାୟ ସମସ୍ତଙ୍କର ଆଦର୍ଶ ହେବା ଉଚିତ ।

ଆମ୍ଭେମାନେ ସାର୍ଦ୍ଧ ବିଂଶାଧିକ ବର୍ଷର ଅକ୍ଲାନ୍ତ ଆନ୍ଦୋଳନ ଫଳରେ ଏହି ଅଲ୍ପଦିନ ହେଲା ଗୋଟାଏ ଖଣ୍ଡିଆ ସ୍ୱତନ୍ତ୍ର ପ୍ରଦେଶ ଲାଭ କରିଅଛୁଁ । ଅବଶ୍ୟ "ନାହିଁ ମାମୁଁଠାରୁ କଣା ମାମୁଁ ଭଲ" ନ୍ୟାୟରେ ସାଦରେ ଗ୍ରହଣ କରିଅଛୁଁ । ସରକାରଙ୍କୁ ମଧ୍ୟ ଧନ୍ୟବାଦ ଦେଉଅଛୁଁ । ଆମ୍ଭର ଏହି ପ୍ରଦେଶ ପୂର୍ଣ୍ଣାଙ୍ଗ ନ ହେବାଯାଏଁ କଦାପି ଆମ୍ଭମାନଙ୍କର ତୃପ୍ତି ହେବ ନାହିଁ । ଆମ୍ଭର ପ୍ରଦେଶ ନଅ-ଣ୍ଟିଆ ବଜେଟ ନେଇ ଜୀବନର ଗତି ଆରମ୍ଭ କରିଅଛି । ଓଡ଼ିଶାର ଅନେକ ଭୂମିରେ ସ୍ଥାୟୀ ବନ୍ଦୋବସ୍ତ ହୋଇ ସାରିଅଛି । ପ୍ରଦେଶର ବିଶେଷ ଭାଗ ଅନୁନ୍ନତ ମାଳ ଅଞ୍ଚଳ । ଧୋଇ ମରୁଡ଼ି ବରାବର ରହିଛି । ବନ୍ୟାର ପ୍ରତୀକାର କରିଯାଇ ପାରି ନାହିଁ । ଅଥଚ ଓଡ଼ିଶାର ପୁରପଲ୍ଲୀରେ ମ୍ୟାଲେରିଆ ପୂରି ରହିଅଛି । ଦରିଦ୍ର ଉତ୍କଳ ପେଟ ଦାନାର ଅଭାବରେ ସକଳ ପ୍ରକାର ରୋଗର ସମ୍ମୁଖୀନ ହେଉ-ଅଛି । ସରକାର ପାଶ୍ଚାତ୍ୟ ଚିକିତ୍ସାର ପ୍ରଚାରରେ ଦେଶର ସମୁନ୍ନତି ସାଧନ କରିବାକୁ ଗଲେ କେବଳ ଶ୍ୱେତହସ୍ତୀ ପୋଷଣ କରିବେ ବୋଲି ଅନେକଙ୍କର ବିଶ୍ୱାସ । ଉତ୍କଳରେ ଆୟୁର୍ବେଦର ପ୍ରଚାର ପ୍ରତି ଯଦି ମହାମାନ୍ୟ ସରକାରଙ୍କର ଶୁଭଦୃଷ୍ଟି ପଡ଼େ, ତେବେ ପ୍ରଜା ସକଳ ମୃତ୍ୟୁମୁଖରୁ ରକ୍ଷାପାଇବେ । ଓଡ଼ିଶାର ଅନେକ କ୍ଷେତ୍ରରେ ଜୋର ଜବରଦସ୍ତି ବିଦେଶୀ ଔଷଧ ଦେଲେ ମଧ୍ୟ ପରିଗୃହୀତ ହେଉନାହିଁ । ସେହିଦିନ ମାନନୀୟ ପଣ୍ଡିତ ଶ୍ରୀ ଗୋଦାବରୀଶ ମିଶ୍ର ମହୋଦୟ ପରାମର୍ଶଦାତା ସମିତିରେ ଆୟୁର୍ବେଦର ଉନ୍ନତି ବିଧାନ ସକାଶେ ସରକାରଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଗୋଦାବରୀଶ ବାବୁଙ୍କର ହୃଦୟତାକୁ ଧନ୍ୟବାଦ । ଏ ଦିଗରେ ମହାମାନ୍ୟ ସରକାର-ଙ୍କର ଶୁଭ ଦୃଷ୍ଟି ପଡ଼ିବା ନିତାନ୍ତ ବାଞ୍ଛନୀୟ ।

ଏହି ସ୍ୱତନ୍ତ୍ର ପ୍ରଦେଶ ଲାଭରେ ଆମ୍ଭମାନଙ୍କର କର୍ତ୍ତବ୍ୟ ବଢ଼ି ଯାଇଅଛି । ଯେତେଦିନ ଯାଏଁ ଓଡ଼ିଶାର ଅଶିକ୍ଷିତ ବା ଅର୍ଦ୍ଧଶିକ୍ଷିତ ବୈଦ୍ୟମାନେ ଚିକିତ୍ସା କରୁଥିବେ, ସେତେଦିନଯାଏଁ ଆୟୁର୍ବେଦର ଉନ୍ନତି ହୋଇ ପାରିବ ନାହିଁ ! ତା'ର ମହତ୍ତ୍ୱ ଲୋକେ ଉପଲବ୍ଧି କରି ପାରିବେ ନାହିଁ । ଯେଉଁମାନେ କୁଳ ପରମ୍ପରାକ୍ରମେ ଚିକିତ୍ସା କରି ଆସୁଅଛନ୍ତି, ସେହିମାନେ ମଧ୍ୟ ଶାସ୍ତ୍ରମାନ ପଢ଼ି ଯେପରି ଅଧିକ କାର୍ଯ୍ୟକ୍ଷମ ହେବେ, ସେପରି ବନ୍ଦୋବସ୍ତ କରିବାକୁ ହେବ । ଆମ୍ଭର ସମ୍ମିଳନୀ କେତେ ବର୍ଷ ହେଲା ପରୀକ୍ଷା ସମିତି ଗଠନ କରି ଏ ଦିଗରେ କାର୍ଯ୍ୟ କରି ଆସୁଅଛି । ଶିକ୍ଷିତ ବୈଦ୍ୟମାନଙ୍କୁ ପ୍ରସ୍ତୁତ କରିବାକୁ ଯଥାସାଧ୍ୟ ଚେଷ୍ଟା କରି ଆସୁଅଛି । କିନ୍ତୁ ଆଶାନୁରୂପ ଫଳ ଲାଭ କରିପାରୁ ନାହିଁ— ନ ପାରିବାର କଥା । ଆମ୍ଭର ସମଗ୍ର ପ୍ରଦେଶରେ ଗୋଟିଏ ବୋଲି ଧାରାବାହିକ ଆୟୁର୍ବେଦ ବିଦ୍ୟାଳୟ ନାହିଁ । ପୁରୀ ସଂସ୍କୃତ କଲେଜରେ ଯେଉଁ ଆୟୁର୍ବେଦ ଶାଖା ଅଛି ତହିଁରେ କେବଳ ଆୟୁର୍ବେଦ ଅଧ୍ୟାପନାର ବ୍ୟବସ୍ଥା ଅଛି । ରୋଗି-ଶୁଶ୍ରୂଷା ଓ କର୍ମାଭ୍ୟାସର କୌଣସି ଆୟୋଜନ କରାଯାଇ ନାହିଁ । ଭେଷଜମାନଙ୍କରେ ବୈଷୟିକ ଶିକ୍ଷା ଦିଆଯାଉ ନାହିଁ । ଆୟୁର୍ବେଦ କଲେଜ ସଂସ୍କୃତ କଲେଜରୁ ପୃଥକ୍ ହେବା ସର୍ବତୋଭାବେ ବାଞ୍ଛନୀୟ । ସଂସ୍କୃତ କଲେଜର ପରିଧିରେ ରହିଲେ କଦାପି ତାହାର ଅଭ୍ୟୁନ୍ନତି ହୋଇ ପାରିବ ନାହିଁ । ଆୟୁର୍ବେଦ ପୂର୍ଣ୍ଣାଙ୍ଗ କରିବାକୁ ହେଲେ ସକଳ ଶାଖାର ସୁନ୍ଦର ଅଧ୍ୟାପନା ଓ କର୍ମାଭ୍ୟାସର ସକଳ ଆୟୋଜନ କରିବାକୁ ହେବ । ମାନ୍ଦ୍ରାଜ ସରକାର School of Indian Medicine ସ୍ଥାପିତ କରି ଆୟୁର୍ବେଦର ଅଭ୍ୟୁନ୍ନତିକଳ୍ପେ ମନ ବଳାଇ ଅଛନ୍ତି । ଆମ୍ଭମାନଙ୍କର ସରକାର ମଧ୍ୟ ସେହି ଆଦର୍ଶରେ ଏକ ଆୟୁର୍ବେଦ ବିଦ୍ୟାଳୟ ସ୍ଥାପନ କରିବେ ବୋଲି ଆଶା କରୁଅଛି ।

ମହାଶୟ ଓଡ଼ିଶା ସରକାର ଏ ଦିଗରେ ତ୍ରୁଟି କଲେ ତାଙ୍କର କର୍ତ୍ତବ୍ୟରେ ତ୍ରୁଟି କଲେ ବୋଲି ଭାବିବାକୁ ହେବ । ଏ ପର୍ଯ୍ୟନ୍ତ ସରକାର ଆୟୁର୍ବେଦ ବିଷୟରେ କରଛଡ଼ା ହୋଇ ରହି ଅଛନ୍ତି । ସରକାର ଇଚ୍ଛା କଲେ ପୁରୀ ସଂସ୍କୃତ କଲେଜର ଆୟୁର୍ବେଦ ଶାଖାକୁ ଏକ ଆଦର୍ଶ ଧରଣର ଆୟୁର୍ବେଦ ବିଦ୍ୟାଳୟରୂପେ ପରିଣତ କରି ପାରନ୍ତି । ଆନନ୍ଦର କଥା—ଏହି କେତେ ଦିନ ହେଲା ପୁରୀର କେତେକ ଉତ୍ସାହୀ ବୈଦ୍ୟମାନଙ୍କର ସଦୁଦ୍ୟମରେ ଏକ ଅଷ୍ଟାଙ୍ଗ ଆୟୁର୍ବେଦ ବିଦ୍ୟାଳୟ ସ୍ଥାପିତ ହୋଇଅଛି । ଅନୁଷ୍ଠାନଟି ଶିଶୁ ଅବସ୍ଥାରେ ରହିଲେ ମଧ୍ୟ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଅଛି । ସରକାର ତଥା ଜନସାଧାରଣଙ୍କର ଅନୁକୂଲ୍ୟରେ ଏହାର ଅଭିବୃଦ୍ଧି ହେବ ବୋଲି ଆଶା କରାଯାଏ । ଏହି ଆଦର୍ଶ ଓଡ଼ିଶାର ପ୍ରଧାନ ପତ୍ତନ ବ୍ରହ୍ମପୁର, କଟକ ଓ ବାଲେଶ୍ୱରରେ ପ୍ରତିଫଳିତ ହେବା ଉଚିତ ।

ମାନ୍ଦ୍ରାଜ ସରକାର Central Board of Indian Medicine ସ୍ଥାପନ କରି ଅଛନ୍ତି । ଆଧୁନିକ ଉତ୍କଳର ଗଞ୍ଜାମବାସୀ ଅନେକ ଚିକିତ୍ସକ ସେହି ବୋର୍ଡର ନିୟମାନୁଯାୟୀ ନିଜ ନିଜ ନାମ ରେଜିଷ୍ଟର କରି ଅଛନ୍ତି । ବଙ୍ଗ ସରକାର ମଧ୍ୟ ନିକଟ ଭବିଷ୍ୟତରେ Central Board ସ୍ଥାପନ କରିବାର ଆୟୋଜନ କରୁଅଛନ୍ତି । ଆମ୍ଭମାନଙ୍କର ଓଡ଼ିଶା ସରକାର ଶୀଘ୍ର ସେଣ୍ଟ୍ରାଲ ବୋର୍ଡ ସ୍ଥାପନ କରିବେ ବୋଲି ଆଶା କରାଯାଏ । ସେଣ୍ଟ୍ରାଲ ବୋର୍ଡ ସ୍ଥାପିତ ନ ହେଲେ ଅଶିକ୍ଷିତ ବୈଦ୍ୟମାନଙ୍କର ସଂଖ୍ୟା ହ୍ରାସ ଓ ଶିକ୍ଷିତ ବୈଦ୍ୟ-ମାନଙ୍କର ଅଭିବୃଦ୍ଧି କଦାପି ସମ୍ଭବପର ହେବ ନାହିଁ । ମାନ୍ଦ୍ରାଜ ସରକାର ସୁପରିଚାଳିତ ଦାତବ୍ୟ ଔଷଧାଳୟକୁ ନିୟମିତରୂପେ ଗ୍ରାଣ୍ଟ ଦିଅନ୍ତି । ଆମ୍ଭ ସରକାରଙ୍କର ସେପରି କିଛି ସଦୁଦ୍ୟମ ଥିବା ଶୁଁ

ଜାଣେ ନାହିଁ । ଆଗାମୀ ବଜେଟରେ ଏଥି ସକାଶେ ସ୍ୱତନ୍ତ୍ର ବ୍ୟବସ୍ଥା କରିବାକୁ ସରକାରଙ୍କୁ ଅନୁରୋଧ କରିବା ଉଚିତ ମନେ କରେ ।

ଓଡ଼ିଶାର ଉର୍ବର କ୍ଷେତ୍ରରେ ସକଳ ପ୍ରକାର ଉଦ୍ଭିଦ ଓ ଧାତୁ ଦ୍ରବ୍ୟ ପୂରି ରହିଅଛି । କୃଷି ଗବେଷଣା ଅଭାବରେ ସେ ସମସ୍ତ ପ୍ରକାଶ ପାଉନାହିଁ । ସରକାର ତଥା ଜନସାଧାରଣଙ୍କର ଶୁଭଦୃଷ୍ଟି ପଡ଼ିଲେ ସେ ସମସ୍ତ ପ୍ରକାଶ ପାଇବ । ଆୟୁର୍ବେଦ ଜଗତରେ ଏକ ଅପୂର୍ବ ଯୁଗର ସୂତ୍ରପାତ କରାଇବ ।

ଆଗାମୀ ବର୍ଷ ଭାରତରେ ପ୍ରାଦେଶିକ-ସ୍ୱାତନ୍ତ୍ର୍ୟଶାସନ କାରି କରାହେବ । ନିର୍ବାଚନରେ ଆୟୁର୍ବେଦ ପ୍ରେମିକ ପ୍ରାର୍ଥୀମାନେ ଯେପରି ଯଶସ୍ୱୀ ହେବେ—ପ୍ରତ୍ୟେକ ବୈଦ୍ୟ ଚେଷ୍ଟା କରିବା ଉଚିତ । ଏ ଦିଗରେ ବୈଦ୍ୟମାନଙ୍କର ଆନ୍ଦୋଳନ ବିଶେଷ କାର୍ଯ୍ୟକାରୀ ହେବ ବୋଲି ମୋର ବିଶ୍ୱାସ ।

ମାନ୍ଦ୍ରାଜର ପ୍ରତ୍ୟେକ ଜିଲ୍ଲା ବୋର୍ଡର ଅଧୀନରେ ଅନେକ ଗୁଡ଼ିଏ ଆୟୁର୍ବେଦ ଚିକିତ୍ସାଳୟ ପ୍ରଚଳିତ ହୋଇଅଛି । ଆଧୁନିକ ଉତ୍କଳର ଗଞ୍ଜାମ ଅଂଶରେ ଆଜ ସୁଦ୍ଧା ୬ଟି ଚିକିତ୍ସାଳୟ ଜିଲ୍ଲାବୋର୍ଡ଼ ଅଧୀନରେ ଚାଲୁଅଛି । ଏହିଗୁଡ଼ିକ କୌଣସି ଅଂଶରେ ପାଶ୍ଚାତ୍ୟ ଚିକିତ୍ସାଳୟର ନିମ୍ନ ସ୍ତରରେ ନାହାନ୍ତି । ପୁରୀ, କଟକ, ବାଲେଶ୍ୱର ପ୍ରଭୃତି ଜିଲ୍ଲା ବୋର୍ଡଗୁଡ଼ିକ ଏହି ଆଦର୍ଶ ଅନୁସରଣ କଲେ ଲୋକ-ମାନଙ୍କର ବିଶେଷ ଉପକାର ହେବ । ସମ୍ମିଳନୀ ପକ୍ଷରୁ ବିହିତ ଆନ୍ଦୋଳନ ହେବା ବାଞ୍ଛନୀୟ ।

ଆମ୍ଭର ଏହି ସମ୍ମିଳନୀ ଅଷ୍ଟମ ବର୍ଷରେ ପଦାର୍ପଣ କରିଅଛି । ଆନନ୍ଦର କଥା—ଏହି ବର୍ଷ ଏହି ସମ୍ମିଳନୀ ରେଜିଷ୍ଟ୍ରୀକୃତ ହୋଇ-ଅଛି । ଏହି ଅଳ୍ପ ସମୟ ମଧ୍ୟରେ ସମ୍ମିଳନୀ ଆଶାନୁରୂପ ଉନ୍ନତି ସାଧନ କରିଅଛି । ସମ୍ମିଳନୀର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଅନେକ

କୃତବିଦ୍ୟ ଚିକିତ୍ସକ ନିଜ ନିଜ ଜୀବିକା ଅର୍ଜନ କରିପାରୁ ଅଛନ୍ତି । ସମ୍ମିଳନୀ ନାରୀ ଜାତିର ମଧ୍ୟ ଜାଗରଣ ଆଣିପାରି ଅଛି । ସମ୍ମିଳନୀ ପ୍ରଦର୍ଶନୀ ସାହାଯ୍ୟରେ ଅନେକ ନବ ନବ ତତ୍ତ୍ୱ ଦେଖାଇ ପାରିଅଛି । ବନ୍ୟାର ଉତ୍ପୀଡ଼ନ ସମୟରେ ବିହିତ ସାହାଯ୍ୟ କରି ସୁନାମ ଅର୍ଜନ କରିଅଛି । ସମ୍ମିଳନୀର ବିଗତ ଅଧିବେଶନଗୁଡ଼ିକ ଦେଶରେ ଏକ ଅଭିନବ ଜାଗରଣ ଜାତ କରାଇଛି । ସମ୍ମିଳନୀ ପ୍ରତି ଜନ-ସାଧାରଣଙ୍କର ଶୁଭଦୃଷ୍ଟି ପଡ଼ିଅଛି । ସମ୍ମିଳନୀର କାର୍ଯ୍ୟ ଦେଖି ଜୟପୁରର ମହାରାଜ ସାହିତ୍ୟ ସମ୍ରାଟ ଶ୍ରୀ ଶ୍ରୀ ଶ୍ରୀ ବିକ୍ରମ ଦେବ ବର୍ମା ମହୋଦୟ ଆୟୁର୍ବେଦର ଉନ୍ନତି ସକାଶେ ତିନି ଶତ ଟଙ୍କା ଦାନ କରି ଅଛନ୍ତି । ସମ୍ମିଳନୀର କାର୍ଯ୍ୟ ଆଶାଜନକ ହେଲେ ବାର୍ଷିକ ତିନି ଶତ ଟଙ୍କା ଦେବେ ବୋଲି ମଧ୍ୟ ଆଶ୍ୱାସ ଦେଇ ଅଛନ୍ତି । ପାରଳାର ସ୍ୱଦେଶପ୍ରାଣ ମହାରାଜା ମହୋଦୟ ସମ୍ମିଳନୀର ଅନୁରୋଧକ୍ରମେ ସଂସ୍କୃତ କଲେଜରେ ଆୟୁର୍ବେଦ ଶାଖା ଉଦ୍‌ଘାଟନ କରି ଧନ୍ୟ-ବାଦାର୍ହ ହୋଇ ଅଛନ୍ତି । ଧରାକୋଟ, ଚିକିଟି ପ୍ରଭୃତି ବଦାନ୍ୟ ରାଜାମାନଙ୍କର ସହାନୁଭୂତି ସମ୍ମିଳନୀ ଲାଭ କରିଅଛି । ଦେଶହିତୈଷୀ କର୍ମପ୍ରାଣ ଲକ୍ଷ୍ମୀନାରାୟଣ ସାହୁ ଓ ବିଶ୍ୱନାଥ ଦାସ ପ୍ରଭୃତିଙ୍କୁ ସମ୍ମିଳନୀ ନିଜର କରିପାରି ଅଛି । ସମ୍ମିଳନୀ ବଦାନ୍ୟ ରାଜା ମହାରାଜା ଓ ସହୃଦୟ କର୍ମୀମାନଙ୍କଠାରେ ଚିରକାଳ କୃତଜ୍ଞ ରହିବ । ସମ୍ବଲପୁର ଓ ଜୟପୁର ଅଧିବାସୀମାନେ ମଧ୍ୟ ସମ୍ମିଳନୀରେ ଯୋଗ ଦେଇ ଅଛନ୍ତି । ଆପଣମାନଙ୍କର ଅଦମ୍ୟ ଉତ୍ସାହ ଓ ସହାନୁଭୂତି ବଳରେ ସମ୍ମିଳନୀ ଉତ୍ତରୋତ୍ତର ଅଭିବୃଦ୍ଧି ଲାଭ କରିବ ବୋଲି ମୋର ବିଶ୍ୱାସ ।

ସମ୍ମିଳନୀର ପରୀକ୍ଷା ସମିତିର କାର୍ଯ୍ୟ ମଧ୍ୟ ପ୍ରଶଂସନୀୟ । କ୍ରମେ କ୍ରମେ ପରୀକ୍ଷାର୍ଥୀ ସଂଖ୍ୟା ବଢ଼ୁଅଛି । ସହର ତଥା ମଫସଲବାସୀ-ମାନଙ୍କର ମଧ୍ୟ ପରୀକ୍ଷା ପ୍ରତି ଆଗ୍ରହ ଦେଖାଯାଉ ଅଛି ।

ବିଶେଷ ଦୁଃଖର କଥା ଯେ ସମ୍ମିଳନୀର ମୁଖପତ୍ର ପତ୍ରିକା ଗତ ବର୍ଷ ପ୍ରକାଶିତ ହୋଇପାର ନାହିଁ । କାର୍ଯ୍ୟକାରୀ ସମିତିର ଉଦାସୀନତା କଦାପି ସ୍ପୃହଣୀୟ ନୁହେଁ । ଏ ବିଷୟରେ କାର୍ଯ୍ୟକାରୀ ସମିତି ବିଶେଷ କିଛି ଆୟୋଜନ କରିଥିଲା ପରି ମୁଁ ଅବସର ପାଇପାରୁ ନାହିଁ । ଅର୍ଥାଭାବରୁ ପତ୍ରିକା ପ୍ରକାଶ ପାଇନାହିଁ ବୋଲି ମୁଁ ବିଶ୍ୱାସ କରୁନାହିଁ । ଲେଖକମାନଙ୍କର ଔଦାସୀନ୍ୟ ତଥା କର୍ତ୍ତୃପକ୍ଷଙ୍କର ନୀରବତା ଏଥି ସକାଶେ ଦାୟୀ । ଅବଶ୍ୟ ମୁଁ ସ୍ୱୀକାର କରୁଅଛି— ଶିକ୍ଷକମାନଙ୍କର ଗୁରୁ ଦାୟିତ୍ୱ ଦୃଷ୍ଟିରେ ପ୍ରବନ୍ଧ ଲେଖନ ନଗଣ୍ୟ । ତଥାପି ତାକୁ ଛାଡ଼ି ଦେଲେ ଚଳିବ ନାହିଁ । ଆମ୍ଭମାନଙ୍କର ଏହି ଔଦାସୀନ୍ୟ ଦେଖିଲେ ଲୋକମାନେ କ'ଣ ଭାବିବେ । ଆପଣମାନଙ୍କର ଅଧ୍ୟବସାୟ ଓ ସହାନୁଭୂତି ବଳରେ ପୁନରପି ପତ୍ରିକା ଅବିରତ ଭାବେ ପ୍ରକାଶିତ ହେବ ବୋଲି ମୁଁ ଆଶା କରୁଅଛି ।

ସମ୍ମିଳନୀର ଭବିଷ୍ୟତ୍ ଆପଣମାନଙ୍କର ଅଧ୍ୟବସାୟ ଓ ଜନସାଧାରଣଙ୍କର ସହୃଦୟତା ଉପରେ ନିର୍ଭର କରେ । ମୁଁ ଜଣେ ଆଶାବାଦୀ; ଆପଣମାନେ ସମୁଦ୍ୟମ କଲେ ଅବଶ୍ୟ ରାଜା, ମହାରାଜା, ଧନୀ, ଦରିଦ୍ର, ଶିକ୍ଷିତ, ଅଶିକ୍ଷିତ, ଦେଶ ପ୍ରେମିକ, ଦେଶୋଦ୍ଧାରକ ସମସ୍ତଙ୍କର ସହାନୁଭୂତି ଲାଭକରିପାରିବେ ବୋଲି ମୋର ଆତ୍ମପ୍ରତ୍ୟୟ ଅଛି । ସମ୍ମିଳନୀ ଦରିଦ୍ର ଓଡ଼ିଶାର ପୁର ପଲ୍ଲୀର ପରିସରରେ ଯେପରି ପ୍ରସାର ଲାଭ କରିବ, ସେ ଭାର ଆପଣମାନଙ୍କ ଉପରେ ନ୍ୟସ୍ତ ରହିଅଛି । ଏହି ସମ୍ମିଳନୀର କାର୍ଯ୍ୟ ସଙ୍ଗେ ସଙ୍ଗେ ଯେପରି ସକଳ ବିଷୟ ବିସ୍ମୃତି ଗର୍ଭରେ ବିଲୀନ ନ ହୁଏ, ସେଥିପ୍ରତି ମୁଁ ଆପଣମାନଙ୍କର କୃପାଦୃଷ୍ଟି ଆକର୍ଷଣ କରୁଅଛି ।

ଆପଣମାନେ କେତେ ତ୍ୟାଗ ଓ ପରିଶ୍ରମ ସ୍ୱୀକାର କରି ଆଜି ଏଠାରେ ସମବେତ ହୋଇ ଅଛନ୍ତି । ଆପଣମାନଙ୍କର ତ୍ୟାଗ

ଓ ପରିଶ୍ରମକୁ ମୁଁ ଧନ୍ୟବାଦ ଦେଉଅଛି । ଆମ୍ଭେମାନେ ବର୍ଷକେ ଥରେ ଯେ ସମବେତ ହୋଇ ଭାବର ଆଦାନ ପ୍ରଦାନ କରୁଅଛେ— ଏହା କ'ମ ସୌଭାଗ୍ୟର କଥା ନୁହେଁ ।

ଆଉ ଅଧିକ ଗୁଡ଼ାଏ କହି ଆପଣମାନଙ୍କର ଅମୂଲ୍ୟ ସମୟର ଅପବ୍ୟୟ କରାଇବି ନାହିଁ । ହୁଏତ, ଆଜି ମୁଁ କମିଟିର ଅନୁରୋଧରେ ଆପଣମାନଙ୍କର ସମୟର ସଦ୍‌ବ୍ୟବହାର କରିପାରି ନାହିଁ, ମୋର ଏହି ତ୍ରୁଟି ବା ଅସାମର୍ଥ୍ୟ ଆପଣମାନେ ମାର୍ଜନା କରିବେ ବୋଲି ଅନୁରୋଧ କରୁଅଛି ।

ପରିଶେଷରେ ମୁଁ ଆପଣମାନଙ୍କୁ ଆପଣମାନଙ୍କର ସହୃଦୟତା ଓ ଆନ୍ତରିକ ପକ୍ଷପାତ ସକାଶେ ଆନ୍ତରିକ ଧନ୍ୟବାଦ ନ ଦେଇ ରହିପାରୁ ନାହିଁ । ଆପଣମାନେ ମୋର ଏହି ଆନ୍ତରିକ ଧନ୍ୟବାଦ ଗ୍ରହଣ କରି ମୋତେ ବିଦାୟ ଦିଅନ୍ତୁ, ଏବଂ ଆଶୀର୍ବାଦ କରନ୍ତୁ— ସମ୍ମିଳନୀ ସର୍ବାଙ୍ଗୀନ ଉନ୍ନତି ଲାଭ କରୁ ।



ମୁଦ୍ରାକର—ଶ୍ରୀ ହାଡୁ ରାୟଗୁରୁ, ଓଡ଼ିଶା ପ୍ରିଣ୍ଟିଙ୍ଗ୍ ଓ୍ୱାର୍କସ୍, ବ୍ରହ୍ମପୁର

